# ସଚିତ୍ର

# ଶିଶୁଗୀତ

## (ନର୍ସରୀ ରାଇମସ୍)

### ପ୍ରଥମ ଭାଗ

ଅଧ୍ୟାପକ ଶ୍ରୀ ବିରଞ୍ଚିନାରାୟଣ ଦାଶ
ଏମ୍.ଏ., ଏମ୍.ଏଡ୍., ଓ.ଇ.ଏସ୍
ଶିକ୍ଷା ବିଭାଗ, ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀ

ଅଜନ୍ତା ପବ୍ଲିକେଶନ
୧/୬୬୨୫ ଇଷ୍ଟ ରୋହଟାସ୍ ନଗର
ଗଳି ନଂ୪, ସାହାଦ୍ରା, ଦିଲ୍ଲୀ-୩୨

ପ୍ରକାଶକ

ଅଜନ୍ତା ପବ୍ଲିକେଶନ, ଦିଲ୍ଲୀ-୩୨

ସଂକଳକ

ଅଧ୍ୟାପକ ବି.ଏନ୍. ଦାଶ



ଚିତ୍ରକଳା

ଜ୍ଞାନେନ୍ଦ୍ର କୁମାର ରଥ

ଜହ୍ନି ଫୁଲ୍ ଠୋ ଠା
କାକୁଡି ଫୁଲ୍ ଠୋ ଠା
ଚୁଟିଆ ମୂଷା କହି-ଯାଇଛି
ଗୁଡ଼ୁଳ ମୁଠେ ଥୋଇଥା ।

ବାଡି ଆଡେ କୂଅ କି ଦାଣ୍ଡ ଆଡେ କୂଅ
ଗୁଣ୍ଡୁଚି ମୂଷା କହି-ଯାଇଛି ଗୁଡ଼ୁଳ ମୁଠେ ଦିଅ ।
ଜହ୍ନି ଫୁଲ୍ ଠୋ ଠା
କାକୁଡି ଫୁଲ୍ ଠୋ ଠା
ଗୁଲୁଆ ମୂଷା କହି-ଯାଇଛି
ଗୁଡ଼ୁଳ ମୁଠେ ଥୋଇଥା ।



ଡହୁଡହୁମା, ତାଳଗୋଟମା
ଲୁହାପାହୁରାଣି ପିତଳ ସମା

ଆମ୍ଭ ଗୋଟେ ଖାଇ ଖାଇ
କୋଇଲି ଗୋଟେ କଷା

କି ମାଡ ମାଇଲୁ ଭାଇ
ଗୁରି କୋଣିଆ ପଶା



ଇଟିକିଲି ମିଟିକିଲି ଫୁଟିଗଲା କାଇଁଚ
ତୁମର ଆମର ନାଲି ପଇଥିଁ
ନାଲି ପେଁ ପେଁ ବାଜଇ ତୁରା
ଗୋଟିକ ଉପରେ ଗୋଟିଏ ଜିରା


ଚୁଟିଆ ମୂଷାରେ ଚୁଟେଇ ମୂଷି
ଧାନ ଅମାରକ ଖାଉଥା ବସି ।
କରୁଥା ଯାହାତୋ ମନରେ ଖୁସି
ଘରଛାଡି ମୁହିଁ ଯାଉଛି ରୁଷି ।
ଟିକି ଟିକି ଧାନ ଶହେ ଭରଣ
ଶାତଟା ଅମାର କଲୁଣି ଶୂନ୍ୟ ।
ଗଣେଷ ବାହାନ ଅଟୁରେ ମୂଷା
ତୋତେ ମାରିବାକୁ ନାହିଁ ଭରସା ।

ଠିଆ ପୁଚି ନାରଙ୍ଗ
ଗୋଡ ଦିଟା ସାରଙ୍ଗ
ସାରଙ୍ଗ ବଣକୁ ଯାଇଥିଲି
ସାରଙ୍ଗ କୋଳି ଆଣିଥିଲି
ଅଧେ କଲି କଆଁ
ଅଧେ କଲି ଭଜା
ମୋ ଭାଇ ରଜା, ମୋ ଭାଉଜ ରାଣୀ
ହିଡ ତଳେ ପୋଉ ଗହୀର କୂଅ
କିଏ କାଢିଦେବ ପାଣି



ଅଇଲା କଳାପାହାଡ଼
ଭାଙ୍ଗିଲା ଲୁହାର ବାଡ଼
ପିଇଲା ମହାନଦୀ ପାଣି
ସୁବର୍ଣ୍ଣ ଥାଳିରେ ହେଡା ପରଷିଲେ
ମୁକୁନ୍ଦ ଦେବଙ୍କ ରାଣୀ ।




ମୋ ପେଁକାଳି ବାଜେ ରେ
ମୋ ପେଁକାଳି ବାଜେ
ଲଙ୍ଗଳ ଦେବି
ଜୁଆଳି ଦେବି
ମୋ ପେଁକାଳି ବାଜେ
ହାତୀ ଦେବି
ଛୁଟୀ ଦେବି
ମୋ ପେଁକାଳି ବାଜେ


ଢୁଲୁଚରେ ହାତୀ ଢୁଲୁ
ବାଆ ପାଣି ଖାଇ ଫୁଲ
ହାତୀ ଢୁଲୁଥାଇ ଲସର ପସର
କିଆ କନ୍ଦା ଖାଇବାକୁ
କହ୍ନେଇ ଧାଏଁଲୋ ଲସର ପସର
ଦୁଧ ସର ଖାଇବାକୁ


ତୁ ଖେଳୁଥିଲୁ ପୁଚି
ମୁଁ ଖେଳୁଥିଲି ପୁଚି,
ତୋ ଗୋଡ ଗଲା ଖସି
ମୋ ଗୋଡ ଗଲା ଖସି,
ଦେଖି ହସିଦେଲେ ଭାଉଜ ଭାଇ
ଦୁହେଁ ଯାକ ଗଲେ ଲୁଚି

କୋଚିଲା ଗହଳ ପିତା
ପ୍ରଧାନ ମୁଣ୍ଡରେ ଚିତା
ପ୍ରଧାନ ଯାଉଛି ବିଲକୁ
ଧରି ଆଣିଥିଲା ଶଙ୍ଖଚିଲକୁ
ଶଙ୍ଖଚିଲ କଲା ବସା
ପାଇ କାଣୀଙ୍କର ଏତେ ଭରସା
ସମ୍ବଲ ପୁରିଆ ଖୋଷା



ଖରା ନଇଁଲାଣି ପଦାକୁ ଯିବା
ପଦାରେ ସମସ୍ତେ ଖେଳି ବୁଲିବା
ଫୁଁଲ ଫୁଁଟିଅଛି ବାସ ଆସଇ,
ତା' ବାସନା ମୁହିଁ ନାକେ ସୁଘଁଇ
ଆସ ଆସ ସବୁ ବାଳିକା ମାନେ
ଫୁଁଲ ତୋଳି ଯିବା ହରସ ମନେ



ମେଘ ବରଷିଲା ଟୁପୁରୁ ଟପର
କେସୁର ମାଇଲା ଗଜା
କୋଉ ରାଇଜରେ ରହିଲେ ମୋ ରାଜା
ଡେଲିଙ୍ଗି ବାଇଦ ବଜା
ମେଘ ବରଷିଲା ଟୁପୁରୁ ଟାପର
କେସୁର ମାଇଲା ଗଜା
ଖୋରଧା ଗଡରେ ଟମକ ଶୁଭୁଛି
ବାହୁଡି ଅଇଲେ ରଜା





ସକାଳ ହେଲାଣି ଉଠଲୋ ପାରା
କାହ୍ନୁ ବାଡ ଗଛୁ ପଡିଲା ଖରା
ଗଛୁ ଡାଳେ ବସି ରାବଇ କାକ
ଉଠିଲେଣି ପିଲା ଶୁଣି ତା ଡାକ
ତା ରାବ ଶୁଣନ୍ତେ ଜଗତ ଜନ
ଉଠି ନିଜ କାମେ ଦିଅନ୍ତି ମନ
ପିଲାମାନେ ଉଠି ଖେଳନ୍ତି ଦାଣ୍ଡେ
ବଡ ପିଲାଯାନ୍ତି ଗୃହାଳି ଚାଣ୍ଡେ
ଚଷାମାନେ ହଳ ବଳଦ ନେଇ
ବିଲକୁ ଯାଆନ୍ତି ହଳ ବୁଲେଇ


ଆମ୍ବ ବଉଳଲଇ ଫଁଗୁଣ ମାସେ
ଦିଗ ଚହଟଇ ତା'ର ସୁବାସେ ,
ଗୁଣୁ ଗୁଣୁ କରି ମହୁ ମାଛିଏ
ବସନ୍ତି ଆସିଣ ବଉଳ ଦେହେ,
ମହୁ ଘେନି ଉଡିଯାଆନ୍ତି ଚଳି
ନ ଖାଇ, ନ ପିଇ, ସଇଁନ୍ତି ଖାଲି
ପତ୍ର ଗହଳରେ କୋକିଳ ବସି
'କୁହୁ' 'କୁହୁ' ତାନ ଦିଏ ବରଷି ,



ଗୁଲୁଣି ଚଲଉଁ ଚଲଉଁ ପାଇଲି ମୁଁ ଗୋଡି ।
କି ସୁନ୍ଦର ପାରାଯୋଡିକ ଯାଉଛନ୍ତି ଉଡି ।
ଆସ ଆସ ପାରାଯୋଡିକ ମୋ ପିଣ୍ଡାରେ ବସି ।
ଖାଇବାକୁ ଦେବି ତୁମକୁ ମୁଢ଼ି ନଡିଆ ରସ ।
ପିଇବାକୁ ଦେବି ତୁମକୁ ବେଣ୍ଟ ପୋଖରୀ ପାଣି ।
ଶୋଇବାକୁ ଦେବି ଖଟୁଲି ମାଳୀଘରୁ ଆଣି ।
ମାଳିଘର ଖଟୁଲିରେ ଯେ ବାଉଁଶର ପାଟିଆ ।
ରଜାଘର ଝିଅ ଗୋଡରେ ରତନର ଝୁଣ୍ଟିଆ ।
ରତନର ଝୁଣ୍ଟିଆରେ ଥିଲା ମାଣିକ୍ୟ ମରି ।
ଖସିଗଲା ଝୁଣ୍ଟିଆରୁ ସେ ଖୁଣ୍ଟିନେଲା ଶାରୀ ।





ବଡହେଲେ ମୁହିଁ କୃଷକ ହେବି,
ଲଙ୍ଗଳ ଧରି ମୁଁ ବିଲ ଚଷିବି ॥
ନାନା ପ୍ରକାର ମୁଁ ବିହନ ଆଣି,
ବିହନ ବୁଣିବି ସମୟ ଜାଣି ॥
ପାଣି ମଡାଇବି ଦର୍କାର ବେଳେ,
ପାଣି ପାଇ ଗଜା ବଢିବ ହେଲେ ॥
ଘାସ ବାଛି ଦେବି କରି ଯତନ,
ଶସ୍ୟ ପାଚିଗଲେ କାଟି ଆଣିବି ॥
ବିଡା ବିଡା କରି ବାନ୍ଧି ଥୋଇବି,
ଅତି ଯତନରେ ଶସ୍ୟ ମଳିବି ॥
ଖରାରେ ସୁଖାଇ ପୁଡି ବାନ୍ଧିବି,
ଘରକୁ ନେଇଣ ସଞ୍ଚାଇ ଦେବି ॥
ଅତି ସୁଖରେ ମୁଁ ଦିନ କାଟିବି ।


ଗାଈଗଲେ ନାଳେ ନାଳେ
ଗାଈଙ୍କ ପଚ୍ଛରେ ବାଛୁରୀ ହଳେ ଲୋ
ଅଣ୍ଟାକୁ ଘାଗୁଡି ମାଳେ
ମେଘ କଲା ଘଡଘଡ଼ି
ଜଗନ୍ନାଥ ଗଲେ ଗୁଣ୍ଡିଚା ବାଡିଲୋ
ଷୋଳଚକ ଦେଲା ରଡି


ଆଷାଢ଼ ମାସରେ ଯେ ମେଘ ଘଡଘଡି
ବାହାରିଲେ ମହାପ୍ରଭୁ ନନ୍ଦିଘୋଷ ଚଢ଼ି
ନନ୍ଦିଘୋଷ ରଥେ ଯେ ନନ୍ଦର ନନ୍ଦନ
ତାଳଧ୍ୱଜ ରଥେ ବିଜେ ଭାଇ ବଳରାମ
ଦେବୀ ରଥେ ଚଢ଼ିଣ ସୁଭଦ୍ରା ଭଉଣୀ
ଗୁଣ୍ଡିଚ ଗମନ ହେ


ଡାମରା କାଉରେ ଡାମରା କାଉ
ଉଚ ପରବତେ ବୋବାଉ ଥାଉ
ଉଚ ପରବତ କୁହୁଁ କୁହୁଁଆ
ତହିଁରେ ଅଛନ୍ତି ସାତ ଭେଣ୍ଡିଆ

ବାଇ ଚଢେଇ ରେ ବାଇ ଚଢେଇ
ତୋ ମା ଯାଇଛି ଗାଈ ଚରେଇ

ଗାଈ ଚରାଠୁ ଆଣିବ ଦେଇ
କୋଡରେ ବସାଇ କରିବ ଗେଲ


କୁଜି କାଉ ରେ କୁଜି କାଉ
କା,କା ରାବି କଅଣ ଗାଉ
ବନ ପରବତ ଡେଇଁ ତୁ ଯାଉ
ଘର କଥା ନେଇ ପ୍ରବାସେ ଦେଉ
ତୋ ରାବ ଶୁଣନ୍ତେ ପ୍ରବାସୀ ଜନ
ଘର କଥା ଭାଳି ବିରସ ମନ
ଗୁଭଳ ଆଧାର ପାଇଲେ ତୁହି
ସବୁରି ବାରତା ଦେଉତୁ କହି

ଧୋ ଓ ରେ ବାୟା ଧୋ ଓ
ଯୋଉ କିଆରୀରେ ଗହଳ ମାଣ୍ଡିଆ
ସେହି କିଆରୀରେ ଶୋ
ପୂବେଇ ବାଆରେ ମେଘ ବରଷିଲା
ଟୁପୁରୁ ଟୁପୁରୁ ପାଣି
ସାରୁ ଗଛ ମୂଳେ ବେଙ୍ଗୁଲି ନାନୀ
ଆପେ ବୋଲାଉଛି ରାଣୀ -୨-


ବିଲେଇ ନାନୀ ଲୋ  ବିଲେଇ ନାନୀ
ମୂଷା ଧରି ଖାଉ କେତେ କେଜାଣି
ବିଲେଇ ନାନୀ ଲୋ ବିଲେଇ ନାନୀ
ଚୋରାଇ ଖାଉଛୁ ସର ଲବଣୀ
ଅଜାଙ୍କ ବାଡିକୁ ତୋହର ଡର
ଅଜା ଆଇଲେଣି ପଳାତୁ ଖର



ଏଇ ମାଟିରେ ଜନମ ଆମ ଏଇ ମାଟିରେ ବଢି
ଏଇ ମାଟିରେ ମିଶିବୁ ଆମେ ଏଇ ମାଟିରେ ସଢି
ଏଇ ମାଟିକୁ ଦେହରେ ବୋଳି ଖେଳିବୁ କେତେ ଖେଳ
ଏଇ ମାଟିର ରଖିବୁ ଟେକ ଥିବୁ ଯେତେକ କାଳ
ଏଇ ମାଟିକୁ ତିଳକ କରି ମଥାରେ ଆମେ ରଖୁଁ
ଏଇ ମାଟିର ବନ ଶଇଳ ସରସଚ୍ଛବି ଦେଖୁଁ
ଏଇ ସେ ମାଟି ଜନମ ଭୂମି ଯା ଲାଗି ଆମ ଟାଣ
ଏଇ ସେ ମାଟି ଆମ ମାଆଟି ଯା ଲାଗି ଦେବୁ ପ୍ରାଣ ।




ସରଗ ସୁତା
ଗଜ ମୁକୁତା
ଛେଟିଲେ ବକଳା ନାହିଁରେ
ଖାଇ ଦେଉଥିଲେ
ବୋହି ଯାଉଥିବ
ସଂସାର ଭିତରେ ନାହିଁରେ


ଏଇ ଦେଶରେ ଜନମ ଆମ ଏଇଠି ଆମ ଗାଁ
ଏଇ ମାଟିରେ ବଢ଼ିବୁ ଆମେ ଏଇ ଆମରି ମାଆ
ଆମେଂରେ ଯେତେ ଛୋଟିଆ କଢ
ମାନିବୁ ନାହିଁ ଝଞ୍ଜା - ଝଡ
ପତାଇ ଦେବୁ କଅଁଳ ଛାତି
ରଖିବୁ ତାର ନାଆଁ
ଏଇ ଆମରି ମାଆ
ମା'ର ପାଇଁ ଜୀବନ ଦେଇ
ଯୁଗ ଯୁଗରେ ଅମର ହୋଇ
ଗାନ୍ଧି-ଯୀଶୁ ସୁ-ଜ୍ଞାନୀ ଯେତେ
ରଖି ଗଲେ ରେ ନାଆଁ
ଏଇ ଆମର ମାଆ

ସାନ ଚଢେଇରେ ସାନ ଚଢେଇ ତୁ
ମୋ ପାଖକୁ ଆସ ଧାଇଁ
ସାଗୁଆ ବନର ପିଞ୍ଜରା ଟିଏ ମୁଁ
ରଖିଛି ତୋହରି ପାଇଁ
ଅନେକ ସୁନ୍ଦର ତୋରା ଫୁଁଲ ମାନ
ଦେବି ମୁହିଁ ତୋତେ ଆଣି,
ପାଚିଲା ପିଜୁଳି ଦେବି ଲାଗିଥିବ
ଯହିଁରେ କାକର ପାଣି ।



ଖାଇ ସାରି ଅଜା ଆସିଲେ ଭାରି
ଶୋଇଗଲେ ଭିତେ ଘୁଂଗୁଡି ମାରି
ଏତେବେଳେ ଗୋଟେ ଓଲେଇ ଗାଈ
ଦାଢ଼ିରୁ କଳେ ସେ ଦେଲା ଚୋବାଇ
'ମଲି' 'ମଲି' ଅଜା ଛାଡିଲେ ରଡି
ଧାଇଁ-ଯାଇ ଦେଲୁ ଗାଈକୁ ତଡି
ହସରେ ପିଲାଏ ମାରିଲେ ତାଳି
ଅଜା ପଳାଇଲେ ଘରୁ ବାହାରି


ଚକାଚକା ଭଉଁରୀ
ମାମୁଁ ଘର ଚଉଁରୀ
ମାମୁଁ ମୋତେ ମାଇଲେ
ମାଈଁ ମୋତେ ଦୁଧଭାତ ଗୋଲ କରି ଖୋଇଲେ
ଅଜା, ଆଇ ଆସିଲେ
କେତେ କଥା କହିଲେ
କୋଳ କରି ଭଲପିଲା ହେବାପାଇଁ କହିଲେ ।

ଖରାକରୁଅଛି ମେଘବରଷୁଛି
ବିଲୁଆ ନନାର ବିଭା
ଗାଡରୁ ବାହାରି ହିଡରେ କଙ୍କଡା
ଖରାପଉଁଛନ୍ତି କିବା
ଘୋର ଘଡଘଡି, ଘଡଘଡି ରଡି
କମ୍ପେ ପ୍ରାଣ ତାହା ଶୁଣି
ଗରଜିଲା ମେଘ ନ ବରଷେ ପାଣି
ସଭିଏଁ କହନ୍ତି ପୁଣି


ପୁଚିଲୋ
ଯା, ଯା ଘୁଅଁଲୋ
ଗହିରି ବିଲରେ ମଇଁଷି
ଧାନ କେଣ୍ଡା କେଣ୍ଡା ଖାଉଛି
ଅଡ଼େଇ ଦେରେ ଗଉଡ଼ ଭାଇ
ବୋହୂ ବାପଘର ଯାଉଛି

ଗଛଟିଏ ଦିଶେ କେଡେ ସୁନ୍ଦର
କେମନ୍ତ ସୁନ୍ଦର ଡାଳ ପତର ।
ନଇଁ ପଡିଅଛି ଫୁଲରେ ଡାଳ
ଫୁଲ ତୋଳି ଆସ ଗୁନ୍ଥିବା ମାଳ
ଗଛମୂଳେ ମୁହିଁ ଢାଳିବି ଜଳ
ଗଛରେ ଫଳିବ ସୁନ୍ଦର ଫଳ
ସେ ଫଳ ପାଚିଲେ ଭାଙ୍ଗିବି ମୁହିଁ
ଅଧେ ମୁଁ ଖାଇବି ଅଧେକ ତୁହି

ବାୟା ଚଢେଇରେ ବାୟା ଚଢେଇ ତୁ
କୃଷ୍ଣ ଦୁଆରକୁ ଆ
କୃଷ୍ଣ ସଂଗତରେ ଖେଳି ବୁଲି ସାରି
ଦୁଧପିଇ ଦେଇ ଯାଆ
ବାୟା ଚଢେଇରେ ବାୟା ଚଢେଇ ତୁ
କୃଷ୍ଣ ସଂଗତରେ ଥିବୁ
ଆଖି ବୁଜି କରି କୃଷ୍ଣ ଶୋଇଲେ ତୁ
ବସାକୁ ବାହୁଡି ଯିବୁ।



ଏଇ ଆମରି ଗାଁ, ଏଇ ଆମରି ଗାଁ
ସୁଜଳା ସୁଫଳା ଶସ୍ୟ ଶ୍ୟାମଳା ଏଇ ଆମରି ମାଆ –
ଏହାରି କୋଳେ ସଞ୍ଜବେଳେ ଜୁଇ, ତରାଟ, ଫୁଟେ
ଆମ୍ବ ବନର କୁଞ୍ଜ ଉହାଡୁ କୁହୁ କୁହୁ ତାନ ଛୁଟେ
ସଞ୍ଜ ଆଉ ସକାଳରେ ବହେ ଦକ୍ଷିଣା ବାଆ –
ଏଇ ଆମରି ଗାଁ, ଏଇ ଆମରି ମାଆ
ଏହାରି କୋଳେ ବଢ଼ିଛୁ ଆମେ ଏହାର ଫଳ ଖାଇ
ଏହାରି କୋଳେ କରିଛୁଁ ଅଳି କେତେ ଯେ ଗାଳି ଦେଇ
ଏହି ମାଟିର ମମତା ପାଇଁ ରଖିପିବୁ ତା ନାଆଁ
ଏଇ ଆମରି ଗାଁ, ଏଇ ଆମରି ମାଆ

ଭାରତ ମାତାର ଚରଣ ଛୁଇଁ
ଶପଥ କରୁଛୁ ଆଜି
ତାହାରି ସେବା ପାଇଁରେ ଆମେ
ଜୀବନ ଦେବାକୁ ରାଜୀ
ତାହାରି ମାଟି ମା'କୁ ଚଷି
ବଞ୍ଚିଛୁ ଆମେ ଭାରତ ବାସୀ
ଏଇ ମାଟିରେ ସୁନା ଫଳାଇ
କାମ କରିଯିବୁ ମା'ର ପାଇଁ
କର୍ମବୀର ସାଜି





ଆମରି ପରି ପିଲାଟିଏ ସେ
ବାଜିଆ ତା'ର ନାମ
ଏ ଦେଶ ପାଇଁ ହସି ହସିକା
କରିଗଲା ଯେଉଁ କାମ
ଏଇ ଗାଁ'ର ଜୀବନ ପାଇଁ
ସହିଲା କେତେ କଷଣ ସେହି
ଗୁଡୁମ୍ ଗୁଡୁମ୍ ଆବାଜ୍ ଦିନେ
ନେଇଗଲା ତା ପ୍ରାଣ
ଆମେବି ଏବେ ଶକତି ଧରି
ହୋଇ ପାରିବା ବାଜିଆ ପରି
ଏଇ ଦେଶରୁ ବଇରି ତଡି
ହୋଇଯିବା ଶମଶାନ



ଆମେରେ ଯେତେ ଟିକି ସଇନ
ଦୂରକରି ଦେଶୁ ଦୁଃଖ ଦଇନ
ଯୋଗାଇ ସଭିଙ୍କୁ ଖାଦ୍ୟ ବସନ
ଗଢ଼ିବୁ ଦେଶକୁ କରି ମହାନ
ଗାଇ ବୁଲୁଥିବୁ ସୁଲଳିତ କଣ୍ଠେ
ଜୟ୍ ଜବାନ୍ , ଜୟ୍ କିଷାନ





ତୁ ମୋ କଳା କାଇଁଟି

ସର ଲବଣୀ ଖାଉ ତୁ ଲାଥି

ଯଶୋଦା ଉଭାଲୋ ଦାଣ୍ଡଦୁଆରେ

ମୋ କୃଷ୍ଣ ଆସନ୍ତି ଗୋରୁ ପଛରେ ସେ

ଚାଲୁଥାନ୍ତି ଧୀରେ ଧୀରେ ଲୋ

'ବନ୍ଦେ ମାତରମ୍'

ସୁଜଳାମ୍ , ସୁଫଂଳାମ୍, ମଳୟଜ ଶୀତଳାମ୍
ଶସ୍ୟ ଶ୍ୟାମଳାମ୍ ମାତରମ୍ ।
ଶୁଭ୍ରଜ୍ୟୋସ୍ନା ପୁଲକିତ ଯାମିନୀମ୍
ଫୁଲ୍ଲ କୁସୁମିତ ଦ୍ରୁମଦଳ ଶୋଭିନୀମ୍
ସୁହାସିନୀମ୍ ସୁମଧୁର ଭାଷିଣୀମ୍
ସୁଖଦାଂ ବରଦାଂ ମାତରମ୍ ॥
ବନ୍ଦେ ମାତରମ୍ ॥



PRICE RS. 5.00